# ଉତ୍ସର୍ଗ

ଏ

ପୁସ୍ତିକାଖଣ୍ଡି

ଉତ୍କଳ-ନେତା ମାନନୀୟ

**ଶ୍ରୀଯୁକ୍ତ ବାବୁ ଗୋପବନ୍ଧୁ ଚୌଧୁରୀଙ୍କ**

କର-କମଳରେ

ଅର୍ପଣ

# ଭୂମିକା

ଏ ପୁସ୍ତକାଖଣ୍ଡି ଲେଖିବା ସମ୍ପର୍କରେ ଋକ, ଯଜୁ, ଶାମ, ଅଥର୍ବ, ବେଦ (ଋଗ୍ବେଦାଦି ଭାଷ୍ୟଭୂମିକା) ଓ ଜାଜ୍ଞବଲ୍କ୍ୟ, ମନୁ, ପରାଶର, ଗୀତା, ଭାଗବତ, ରାମାୟଣ, ମହାଭାରତାଦିରୁ ସାରକଥାମାନ ବାଛି ପ୍ରମାଣ ଦେଖାଇ ଅଛି, ପୁସ୍ତିକାଖଣ୍ଡି ବଡ଼ ହୋଇଯିବା ଭୟରେ ମୂଳ-ସଂସ୍କୃତ ଶ୍ଳୋକଗୁଡ଼ିକ ପ୍ରଦାନ କରାଯାଇ ନାହିଁ ଅବଶ୍ୟକ ହେଲେ ୨ୟ ସଂସ୍କରଣରେ ପ୍ରଦତ୍ତ ହେବ ।

ଏ ପୁସ୍ତିକାଖଣ୍ଡି ପାଠକ ପାଠିକାମାନଙ୍କର ଆଦୃତ ହେବାର ଦେଖିଲେ ୨ୟ ଭାଗ ଖଣ୍ଡିଏ ଲେଖିବାକୁ ଇଚ୍ଛା କରିବି । ଇତି ।

ବିନୀତ

—ଲେଖକ—

# ଅନ୍ଧ ସଂସ୍କାର

ଯୁଗପ୍ରବର୍ତ୍ତକ ମହାତ୍ମା ଗାନ୍ଧୀଜୀ ଆଜକୁ । ୧୨ ବର୍ଷ ହେବ ଦେଶ, ଜାତି ଓ ସମାଜର ଉନ୍ନତି ପାଇଁ କହି ଆସୁଥିଲେ ଯେ ଭାରତରେ ସୁଦ୍ଧା କାହିଁ ଖଦଡ଼ ପିନ୍ଧ । ମଦ, ଗଞ୍ଜା, ଅଫିମ ଆଦି ନିଶା ଛାଡ଼ ଏବଂ ସମାଜରୁ ଅଛୁଆଁ କଳଙ୍କ ଦୂରକର । ତେବେ ସ୍ୱରାଜ ପାଇବ; ଦେଶ, ଜାତି ଓ ସମାଜର ମଙ୍ଗଳ ହେବ । ଦେଶବାସୀ ଖଦଡ଼ ପିନ୍ଧିବା, ନିଶା ଛାଡ଼ିବା କଥା କଂଗ୍ରେସକର୍ମୀଙ୍କ ଦ୍ୱାରା ଜାଣିଥିଲେ ମାତ୍ର; ଅଛୁଆଁ ଦୋଷ ଉଠାଇବା କଥା ଉପରେ ସେତେ ଜୋର ଦିଆଯାଇ ନ ଥିଲା । ଯେତେବେଳେ ସରକାର ପୃଥକ୍ ନିର୍ବାଚନ ଦ୍ୱାରା ହିନ୍ଦୁ ଜାତିକୁ ଦ୍ୱିଖଣ୍ଡ କରିବାକୁ ଚେଷ୍ଟା କଲେ, ସେତେବେଳେ ମହାତ୍ମାଜୀ କଠୋର ଉପବାସ ବ୍ରତ ଦ୍ୱାରା ପ୍ରାଣବଳି ଦେବା ପାଇଁ ଦୃଢ଼ସଂକଳ୍ପ କରି ଉକ୍ତ ପ୍ରଥା ରଦ କରି ଦେଲେ ଏବଂ ଦେଶ ଓ ସମାଜରୁ ଅଛୁଆଁ ଭେଦ-ଭାବ ଦୂର କରିବା ପାଇଁ ଦେଶବାସୀଙ୍କୁ ଅନୁରୋଧ କଲେ । ଦେଶର ହିତୈଷୀ ସେବକମାନେ ଅଛୁଆଁ ଦୋଷ ଉଠାଇବା କାମରେ ଲାଗି ପଡ଼ିବାରୁ, ଦେଶର ଗୃହାଅନ୍ତେ [illegible] ପଡିଛି । କିଏ କହୁଛି ଗାନ୍ଧୀ ଆମର ଜାତି ମାରିଲା, କିଏ କହୁଛି [illegible] ଧର୍ମ ନାଶ ଗଲା, କିଏ କହୁଛି କୂଅ ମନ୍ଦିର ମାରିଗଲା, କିଏ କହୁଛି [illegible] ଭି କୁକୁର ହେଲେ । ପାଠକେ ଟିକିଏ ବିବେକ ଓ ବୁଦ୍ଧି ଖଟାଇ ଦେଖନ୍ତୁ ଏ ସମସ୍ତ ଭୁଲ ଧାରଣା ନୁହେଁ କି । ଛୁଆଁ ଛୁଇଁ ଦ୍ୱାରା ଜାତି, ଧର୍ମ, କୂଅ, ମନ୍ଦିର, ଠାକୁର କିଛି ମାରି ହୁଅନ୍ତି ନାହିଁ କି ନଷ୍ଟ ହୁଅନ୍ତି ନାହିଁ । ଏହା କିଛି ନୂଆ କଥା ନୁହେ, ଏ କଥା ବହୁ ଦିନ ପୂର୍ବରୁ ବେଦ, ଉପନିଷଦ, ବେଦାନ୍ତ

ନ୍ୟାୟ, ଶାଙ୍ଖ୍ୟ, ଦର୍ଶନାଦ ବନ୍ଧୁ ଶାସ୍ତ୍ରଜ୍ଞାତା ସ୍ୱାମୀ, ଦୟାନନ୍ଦ ସରସ୍ୱତୀ ସ୍ୱାମୀ ବିବେକାନନ୍ଦ ପ୍ରଭୃତି ମହାପୁରୁଷମାନେ କହି ଯାଇଛନ୍ତି । ଆଜି ସେ କଥା କାର୍ଯ୍ୟରେ ପରିଣତ କରିବା ପାଇଁ ମହାତ୍ମା ଗାନ୍ଧୀଜୀ ଦୃଢ଼ପଣ କରିଛନ୍ତି ବୋଲି ଦେଶର ଜାତି, ଧର୍ମ ଓ ସମାଜର ମହା ପରିବର୍ତ୍ତନର ସମୟ ଆସିଅଛି ।

ଏ ସଂସାରରେ ପ୍ରକୃତିଙ୍କ ମାୟାରୂପୀ ଲୀଳାର କାଳଚକ୍ର ଗତିରେ ନିତ୍ୟ ନୂତନ ୨ ମହା ପରିବର୍ତ୍ତନ ଘଟୁଅଛି । ଏପରି ପରିବର୍ତ୍ତନ ଯେ ଆଜିକାଲି ଘଟୁଛି ତାହା ନୁହେ । ଏହା ଆବହମାନ କାଳରୁ ଘଟି ଆସୁଛି । ସ୍ୱୟଂ ଭଗବାନଙ୍କର ମହାପରିବର୍ତ୍ତନ ଅବତାରବାଦୀମାନେ ଦେଖନ୍ତୁ ଯଥା:—ମୀନ,କୂର୍ମ,ବରାହ, ନୃସିଂହ,ବାମନ,ବୁଦ୍ଧ,ରାମ, ପର୍ଶୁରାମ, ଚୈତନ୍ୟ, କୃଷ୍ଣ ପ୍ରଭୃତି ଶରୀରର ପରିବର୍ତ୍ତନ । ଦ୍ୱିତୀୟରେ ଆଜି ଯେ ରାଜା ଜମିଦାର ଆଉ ବଡ଼ଲୋକ କାଲି ସେ ଫକୀର,କାଲି ଯେ ଫକୀର ଆଜି ସେ ରାଜା ଜମିଦାର । ତୃତୀୟରେ ଯେଉଁଠି ସୁନ୍ଦର କୋଠାବାଡ଼ି, ବାଗ୍‌ବଗିଚା ଶୋଭା ପାଉଛି; ତାହା ଦିନେ ମହା ଶ୍ମଶାନରେ ପରିଣତ ହେଉଛି । ଯେଉଁଠି ଗୃଧ୍ର, ଶାନ, ଶୃଗାଳପୂର୍ଣ୍ଣ ମହାଭୟଙ୍କର ଶ୍ମଶାନ ଥିଲା ତାହା ମଧ୍ୟ ସୁନ୍ଦର କୋଠାବାଡ଼ି ବାଗ୍‌ବଗିଚାରେ ଶୋଭା ପାଉଅଛି ।

ମୌଳିକ ବୈଦିକ ଦେଖା ଯାଉଛି, ଜଗତରେ ପ୍ରଥମେ ଏକ ଜାତି ଥିଲେ । ସଂଖ୍ୟା ବୃଦ୍ଧିହେତୁ ଦଳେ ହିନ୍ଦୁ, ଦଳେ ମୁସଲମାନ, ଦଳେ ଖ୍ରୀଷ୍ଟାନ ହୋଇଥିଲେ । ମୁସଲମାନ ଶେଖ୍, ସୟଦ୍, ମୋଗଲ, ପଠାଣ । ଖ୍ରୀଷ୍ଟାନ, କ୍ୟାଥେଲିକ୍, ବେଥଲିକ, ବାପ୍‌ଟିଷ୍ଟ, ପ୍ରୋଟେଷ୍ଟାଣ୍ଟ, ତଦ୍ରୂପ ହିନ୍ଦୁ, ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଓ ଶୂଦ୍ର ଚାରି ଶ୍ରେଣୀରେ ବିଭକ୍ତ

ଦେଲେ । ମୁସଲମାନ, ଖ୍ରୀଷ୍ଟାନ ପ୍ରଭୃତି ସମ୍ପ୍ରଦାୟମାନଙ୍କ ମଧ୍ୟରେ ଛୁଆଁ ଅଛୁଆଁ ଭେଦ ମାତ୍ର ନାହିଁ । ହିନ୍ଦୁସମାଜରେ ମଧ୍ୟ ବହୁ ପୂର୍ବକାଳରୁ ଏହା ନ ଥିଲା ।

ଆଜିକାଲି ଯେଉଁ ମନୁ ପରାଶର ସଂହିତାମାନଙ୍କରେ ନାନା ଉପଜାତି ଓ ଛୁଆଁ, ଅଛୁଆଁ ସମ୍ବନ୍ଧରେ ନାନା ଯୁକ୍ତି ତର୍କ ଦେଖା ଯାଉଅଛି ତାହା ନିତାନ୍ତ ଅଯୌକ୍ତିକ ଅଟେ । କାରଣ ତାହାତ ହିନ୍ଦୁମାନଙ୍କର ମୌଳିକ ଶାସ୍ତ୍ର,ବେଦ, ଉପନିଷଦ, ବେଦାନ୍ତ, ଶାଙ୍ଖ୍ୟ,ପାତଞ୍ଜଳ, ନ୍ୟାୟ, ଦର୍ଶନ ଆଦି ଷଡ଼ଶାସ୍ତ୍ର ମଧ୍ୟରେ ଗଣ୍ୟ ନୁହେ । ଉକ୍ତ ଷଡ଼ଶାସ୍ତ୍ରମାନଙ୍କରେ ଉଲ୍ଲେଖ ଅଛି ଜାତି ପ୍ରଥାରୁ ପାଞ୍ଚ ନାହିଁ କିମ୍ବା ସେମାନଙ୍କ ମଧ୍ୟରେ ଛୁଆଁ ଅଛୁଆଁ କିଛି ନାହିଁ । ମନୁ ପରାଶର ହେଉଛି ରକ୍ଷଣଶୀଳ ସାମାଜିକମାନଙ୍କର ଅର୍ଥୋପାର୍ଜନର ବ୍ୟବସ୍ଥା ବା ଆଇନ । ମନେକର ତାହା ଯଦି ହିନ୍ଦୁମାନଙ୍କର ଗୋଟିଏ ଆଇନ ହୁଏ ତଥାପି ଆଇନଗୁଡ଼ିକ ସମୟର ଗତି ଅନୁସାରେ ବଦଳେ । ତାହାର ପ୍ରମାଣ ଦେଖନ୍ତୁ ମନୁ କହୁଛନ୍ତି - "ପରଦାର କଲେ ଲିଙ୍ଗଚ୍ଛେଦନ, ବ୍ରାହ୍ମଣକୁ ପ୍ରହାର କଲେ ହାତ କାଟି ପକାଇବା, ଗୋବଧ ବା ବ୍ରହ୍ମବଧ କଲେ ଶରୀରରେ ଝୋଟ ଗୁଡ଼ାଇ ତେଲ ଢାଳି ନିଆଁ ଲଗାଇ ପର୍ବତ ଉପରୁ ତଳକୁ ଗଡ଼ାଇ ଦେବ ।" ଇତ୍ୟାଦି କାଳକ୍ରମେ ପରାଶର ତାହା ବଦଳାଇ ଦେଇ ଚାନ୍ଦ୍ରାୟଣ, କୃଚ୍ଛ୍ରଚାନ୍ଦ୍ରାୟଣ, ସାନ୍ତାପନ ଆଦି ପ୍ରାୟଶ୍ଚିତ ବିଧି ଦ୍ୱାରା ଉକ୍ତ ବିଧି ଖଣ୍ଡନ କରି ଦେଇଛନ୍ତି । ପୁଣି ବର୍ତ୍ତମାନ ସମାଜରେ ପରାଶରଙ୍କର ମତର ସତ୍ତା ଥିବାର ଜଣାଯାଏ ନାହିଁ । ଦେଖନ୍ତୁ ପରାଶର କହୁଛନ୍ତି "ଦଶ ସ୍ଥାନ ସମ ଚକ୍ରି, ଦଶ ଚକ୍ରି ସମ ଧ୍ୱଜ, ଦଶ ଧ୍ୱଜ ସମ ବେଶ୍ୟା, ଦଶ ବେଶ୍ୟା ସମ ନୃପଃ, ଅତଏବ ଏମାନଙ୍କୁ ଛୁଇଁବା ଉଚିତ

ନୁହେ । ଛୁଇଁଲେ ଏହି ପରମାଣରେ ପାପ ହୁଏ । ଆଜକାଲି କୁଲି, କୁମ୍ଭାର, ତେଲି, ବେଶ୍ୟା ରଜାଙ୍କୁ କିଏ ନ ଛୁଉଁଛି । କୁମ୍ଭାର ତ ଭଦ୍ର ସମାଜର ନିତ୍ୟ ସହଚର । ବେଶ୍ୟାମାନେ ତ ନିତ୍ୟ ସହଚରୀ । କୁମ୍ଭାର, ତେଲି, ରଜା ଏମାନଙ୍କୁ ଛୁଇଁବା ଦୂରେ ଥାଉ ବ୍ରାହ୍ମଣମାନେ ସେମାନଙ୍କ ଘରେ ପୁରୋହିତ ହୋଇ ଦକ୍ଷିଣା ହସ୍ତ ଚଲାଉଛନ୍ତି । ଆଉ ରହିଲା କେଉଁ କଥା । ଅତଏବ ଏ ବିଷୟ ଆଉ ଟିକିଏ ବିଶେଷ ଭାବରେ ପର୍ଯ୍ୟାଲୋଚନା କରି ଦେଖାଯାଉ । ପାଠକେ "ଭାଇରେ ଭାଇରେ ନ ରଖ ଭେଦ, ବୃକ୍ଷ ଅଟେ ଭିନ୍ନ ଏକଇ ସ୍ୱାଦ" !

ପରମପିତା ପରମେଶ୍ୱର ଏ ସଂସାରରେ ଯେତେବେଳେ ମାନବ ଜାତି ସୃଷ୍ଟି କଲେ, ସେତେବେଳେ ହିନ୍ଦୁ, ମୁସଲମାନ ଖ୍ରୀଷ୍ଟାନ ବା ବ୍ରାହ୍ମଣ କ୍ଷତ୍ରିୟ ପାଣ ଡମ ମେହେନ୍ତର ଆଦି ଉଚ୍ଚ ନୀଚ ଜାତି ସୃଷ୍ଟି କରି ନ ଥିଲେ । ସେ କେବଳ ଗୋଟିଏ ମନୁଷ୍ୟ ଜାତି ସୃଷ୍ଟି କରିଥିଲେ । ସେହି ଗୋଟିଏ ଜାତି ଗୁଣ କର୍ମ ଅନୁସାରେ ଚାରି ଶ୍ରେଣୀରେ ବିଭକ୍ତ ହୋଇଥିଲେ । ବଚନ ଅଛି । "ଜନ୍ମନା ଜାୟତେ ଶୂଦ୍ର ସଂସ୍କାରେ ଦ୍ୱିଜ ଉଚ୍ୟତେ, ବେଦଭ୍ୟାସୀ ଭବେତ୍ ବିପ୍ରୋ, ବ୍ରହ୍ମ ଜାନାତି ବ୍ରାହ୍ମଣଃ" । ସମସ୍ତ ମନୁଷ୍ୟ ଜନ୍ମ ସମୟରେ ଶଦ ବୋଲାଇଥାନ୍ତି । ଗୁରୁମନ୍ତ୍ର ଗ୍ରହଣ ଦ୍ୱାରା ଶରୀରକୁ ସଂସ୍କାର କରି ... ଲେ ଦ୍ୱିଜ ବୋଲାନ୍ତି । ଦ୍ୱିଜ ପୁଣି ପାଠ ବା ବେଦ ଅଭ୍ୟାସ ... ବୋଲାନ୍ତି । ବିପ୍ର ପୁଣି କଠୋର ପବିତ୍ର ସାଧନ ଦ୍ୱାରା ବ୍ରହ୍ମଜ୍ଞାନ ପ୍ରାପ୍ତ ହେଲେ ବା ବ୍ରହ୍ମକୁ ଚିହ୍ନିଲେ ବ୍ରାହ୍ମଣ ବୋଲାନ୍ତି ।

ବ୍ରାହ୍ମଣମାନେ ଗୌରବନ୍ତ, ବୁଦ୍ଧିମାନ୍, ଶାନ୍ତଶୀଳ, ଦୟାବାନ୍ ଆଦି ସଦ୍‌ଗୁଣବିଶିଷ୍ଟ । ସେମାନଙ୍କର କର୍ମ ହେଉଛି ପଢ଼ିବେ,

ପଢ଼ାଇବେ । ଯଜ୍ଞ କରିବେ ଓ କରାଇବେ । ଦାନ ଦେବେ, ଦଆଇବେ ଓ ଗ୍ରହଣ କରିବେ । ରାଜନୀତି, ସମାଜନୀତି, ଧର୍ମନୀତି, ଅର୍ଥନୀତି ପ୍ରଭୃତି ଅନେକ ପ୍ରଣୟନ କରିବେ । ସମାଜର ମଙ୍ଗଳ ନିମିତ୍ତ ଦେବତାଙ୍କ ଉଦ୍ଦେଶ୍ୟରେ ସ୍ତୋତ୍ର, ମନ୍ତ୍ର ଆଦି ପାଠକରିବେ, ଦେବତାଙ୍କ ପୂଜାକରିବେ । ସେମାନେ ବୋଲାଇବେ ବ୍ରାହ୍ମଣ । ଯେଉଁ ମାନେ ରଜୋଗୁଣବିଶିଷ୍ଟ ବାହୁବଳରେ ବଳୀୟାନ ହୋଇ ଅସ୍ତ୍ର ଶସ୍ତ୍ର ଓ ଧନୁର୍ବିଦ୍ୟା ଶିକ୍ଷା କରିବେ ଓ କରାଇବେ ଏବଂ ତଦ୍ୱାରା ଦେଶକୁ ଶତ୍ରୁଙ୍କ ଆକ୍ରମଣରୁ ରକ୍ଷାକରିବେ ସେମାନେ କ୍ଷତ୍ରିୟ । ଯେଉଁ ମାନେ ରଜ ତମମିଶ୍ରିତ ଗୁଣବିଶିଷ୍ଟ ଖାଦ୍ୟ ଆଦି ଗୃହ ସଂସାର ଚଳାଇବା ପାଇଁ କୃଷି ଗୋପାଳନ ଓ ପଦାର୍ଥମାନଙ୍କର ଆଦାନ ପ୍ରଦାନ ଦ୍ୱାରା ବ୍ୟବସାୟ ବାଣିଜ୍ୟ କରିବେ ସେମାନେ ବୈଶ୍ୟ । ଯେଉଁ ମାନେ କେବଳ ତମଗୁଣ ବିଶିଷ୍ଟ ଉପରୋକ୍ତ ତିନିଜାତିର ସେବାକାର୍ଯ୍ୟ କରିବେ ସେମାନେ ଶୂଦ୍ର ବୋଲାଇବେ । ଏହିପ୍ରକାର ଗୁଣ ଓ କର୍ମ ଅନୁସାରେ ଜାତିପ୍ରଥା ଚଳି ଆସୁଥିଲା । ଏହା ଭଗବାନଙ୍କ କୃତ ନୁହେ ମନୁଷ୍ୟ କୃତ । ଏ ପ୍ରଥା ଦ୍ୱାପର ଯୁଗରେ ପ୍ରଚଳିତ ଥିବାରୁ ଶ୍ରୀକୃଷ୍ଣ ଅର୍ଜୁନଙ୍କ କହୁଛନ୍ତି ଗୀତାରେ ଉଲ୍ଲେଖଅଛି— "ଚାତୁର୍ବର୍ଣ୍ଣ୍ୟଂ ମୟା ସୃଷ୍ଟଂ ଗୁଣକର୍ମ ବିଭାଗଶଃ ଇତ୍ୟାଦି ।"

ସତ୍ୟ, ତ୍ରେତା, ଦ୍ୱାପର ଯୁଗରେ ଲୋକେ ଏତେ ନୀଚମନା ନ ଥିଲେ । ତେଣୁ ସେସମୟରେ ଉଚ୍ଚ, ନୀଚ ଛୁଆଁ ଅଛୁଆଁ ଜାତିଭେଦ ନ ଥିଲା । ସେତେବେଳେ ଲୋକେ ଶିକ୍ଷିତ ଓ ଶାସ୍ତ୍ରଜ୍ଞାନୀ ଥିଲେ । ଆଜିକାଲି ଭଳିଆ ଏତେ କୂପମଣ୍ଡୂକ ନ ଥିଲେ । ଏବେ ଏ ଯେଉଁ ଛୁଆଁ ଅଛୁଆଁ ଭେଦଜ୍ଞାନ, ଦେଶ, ସମାଜ, ଜାତି, ଧର୍ମକୁ ନଷ୍ଟ କରି

ମାତରୁ ମାତଡମ କରିବାକୁ ବସିଲାଣି । ଯେଉଁ ଦିନ, ଭାରତବାସୀ ଅପଣା ଭାଇମାନଙ୍କ ମଧ୍ୟରେ କୁସଂସ୍କାରଜଡ଼ିତ ଭେଦନୀତି ସୃଷ୍ଟି କଲେ ସେହିଦିନୁ ଭାରତ ଅଧଃପତନ ଓ ପରପଦାନତ ହୋଇଛି । ତେବେ ଏ ଯେଉଁ ଭେଦନୀତି କିଏ ସୃଷ୍ଟି କଲା, କେବେଠାରୁ ହେଲା, ଦେଖାଯାଉ ।

ଯେଉଁ ସମୟରେ ଦେଶରେ ବ୍ରାହ୍ମଣ୍ୟ ଧର୍ମ ପ୍ରବଳ ହେଲା, ବ୍ରାହ୍ମଣମାନେ ସମାଜରେ ନିଜର ଆଧିପତ୍ୟ ବିସ୍ତାର କଲେ, ନିଜର ସ୍ୱାର୍ଥ ସିଦ୍ଧି ଆଶାରେ ନିୟମ ଜାରିକଲେ ଯେ ବ୍ରାହ୍ମଣ ଛଡ଼ା ଅନ୍ୟ ଜାତିମାନେ ବେଦ ପଢ଼ି ଓ ଶୁଣି ପାରିବେ ନାହିଁ, ଦେବତା ପୂଜା ପାରିବେ ନାହିଁ, ବେଦ ଶାସ୍ତ୍ର ଠାକୁରଙ୍କୁ ଛୁଇଁ ପାରିବେ ନାହିଁ ଏବଂ ଏ ସମସ୍ତ ଯେଉଁ-ସ୍ଥାନରେ ଥିବ ସେ ସ୍ଥାନକୁ ଅନ୍ୟଜାତିମାନେ ଯାଇପାରିବେ ନାହିଁ ଏହା ଅମାନ୍ୟକରି ବେଦ ପଢ଼ିଲେ ଜିଭ କାଟିପକାଯିବ, ଶୁଣିଲେ କାନରେ ସୀସା ତରଳାଇ ଢାଳି ଦିଆଯିବ । ଛୁଇଁଲେ ପ୍ରାୟଶ୍ଚିତ କରାଯିବ । ଇତ୍ୟାଦି, ସେହିସମୟଠାରୁ ଏ ବ୍ୟାଧି ବ୍ରାହ୍ମଣଙ୍କଠାରୁ ଜାତହୋଇ ସମଗ୍ର ଜାତି ଓ ସମାଜକୁ ସଂକ୍ରାମକ ରୋଗପରି ବ୍ୟାପିଗଲା । ଉକ୍ତ ବ୍ୟାଧି ଆଜିକାଲି ଏତେ ପ୍ରବଳ ହୋଇ ପଡିଛି ଯେ ଏବେ ଲୋକଙ୍କୁ ଛୁଇଁଲେ-ଜାତି, ଧର୍ମ, କୂଅ, ମନ୍ଦିର, ଠାକୁର ମାରା ଓ ନଷ୍ଟ ହୋଇ ଯାଉଛି ।

ମନୁଷ୍ୟ ଛୁଇଁବାଦ୍ୱାରା ଧର୍ମ, କୂଅ, ମନ୍ଦିର, ଠାକୁର କଦାପି ମାରା ଓ ନଷ୍ଟ ହୁଏ ନାହିଁ । ସତ୍ ଶାସ୍ତ୍ରରେ ଉଲ୍ଲେଖ ଥିବାର ମଧ୍ୟ ଦେଖାଯାଏ ନାହିଁ । ସଂସାରସ୍ଥ ସମସ୍ତ ମନୁଷ୍ୟ—ମନୁଷ୍ୟଜାତି ନାମରେ କଥିତ । ଉକ୍ତ ଜାତି ଲିଙ୍ଗ ଭେଦରେ ସ୍ତ୍ରୀ, ପୁରୁଷ ଦୁଇଶ୍ରେଣୀ ଓ ଧର୍ମ-ଭେଦରେ ହିନ୍ଦୁ, ମୁସଲମାନ, ଖ୍ରୀଷ୍ଟାନ ତିନି ଶ୍ରେଣୀରେ ବିଭକ୍ତ କରାଯାଇଛି । ମାତ୍ର ଲିଙ୍ଗ ଓ ଧର୍ମଭେଦ ଛାଡ଼ିଦେଲେ ସମସ୍ତେ ମାନବ ଜାତି ମଧ୍ୟରେ ଗଣ୍ୟ ଅଟନ୍ତି ।

ଆଜିକାଲି ଅନେକ ଲୋକ ଆପଣାକୁ ହିନ୍ଦୁ ଶାସ୍ତ୍ରଜ୍ଞାନୀ ଓ ଜାତି-ଅଭିମାନୀ ବୋଲି ଦେଖାଉଅଛନ୍ତି । ସେମାନେ ନିଜକୁ ଭାବୁଅଛନ୍ତି ମୋଠାରୁ ଜ୍ଞାନୀ, ଜାତିଷ୍ଠ, ନୈଷ୍ଠିକ, ଧାର୍ମିକ ବ୍ୟକ୍ତି ଆଉ କେହି ନାହାନ୍ତି । ଭାଇମାନେ, "ମନେ ମନେ କେହି ନ ହୁଅ ଜଣେ, ଖୋଜିଲେ ମିଳିବେ ତୋ ପରି ପଣେ ।" ପାଠକେ, ହିନ୍ଦୁଧର୍ମ ଏତେ ମହତ୍ ଓ ଗରିଷ୍ଠ ଯେ ତାକୁ ଆଜି ପର୍ଯ୍ୟନ୍ତ କେହି ବୁଝାଇବା ବ୍ୟାଖ୍ୟା କରିବାରେ କୃତକାର୍ଯ୍ୟ ହୋଇ ପାରି ନାହାନ୍ତି । ଅତଏବ ଯେଉଁମାନେ ସେବିଷୟରେ ଅଭିବଡ଼ିମା ଦେଖାନ୍ତି ସେମାନଙ୍କ ଧୃଷ୍ଟତା ଛଡ଼ା ଆଉ କିଛି ନୁହେ ।

ମୁଁ ଜଣେ ଖାଣ୍ଟି ହିନ୍ଦୁ, ବହୁତ ଧର୍ମଶାସ୍ତ୍ର ଓଲଟାଇ ତନ୍ନ ତନ୍ନ କରି ଖୋଜି ଦେଖିଲି ମାତ୍ର କୌଣସିଠାରେ ପାଣ, ହାଡ଼ି, ଡମ, କଣ୍ଡରା, ମେହେନ୍ତର, ଆଦି ଶବ୍ଦ ବା ଜାତି କିମ୍ବା ନୀଚ ଅଛୁଆଁ ଜାତି ବୋଲି ଲେଖାଥିବାର ନିଦର୍ଶନ ମିଳିଲା ନାହିଁ, ମାତ୍ର ଯେ ନୀଚକାମ କଲା-ସେ ନୀଚ ବା ଚଣ୍ଡାଳ ନାମରେ କଥିତ ଅଛି । ବଚନ ଅଛି, "ଅଗ୍ନିଦୋ ଗରଦୋଶ୍ଚୈବ, ଶସ୍ତ୍ର ପାଣିଧନାପହା । କ୍ଷେତ୍ର ଦାର ପହାରିଚ ଷଡ଼େତେ ଆତତାୟୀନ୍" । ଯେ ନିଆଁ ଲଗାଏ, ବିଷ ଖୁଆଏ, ହାଣି ପରକୁ ପାଣିରେ ବୁଡ଼ାଏ, ମନୁଷ୍ୟ, ପଶୁ, ପକ୍ଷୀଙ୍କ ନିର୍ଦ୍ଦୟ ଭାବରେ ହତ୍ୟା କରେ, ଜମି, ସ୍ତ୍ରୀକୁ ଜୋର ଜବରଦସ୍ତି ହାସଲ କରେ ତାକୁ ଆତତାୟୀ ବା ଚଣ୍ଡାଳ କହନ୍ତି । ଏଥିରୁ କାର୍ଯ୍ୟ କଣ ବ୍ରାହ୍ମଣ, କରଣ ଆଦି ଉଚ୍ଚଜାତିମାନେ କରନ୍ତି ନାହିଁ କି ? କାହିଁ ସେମାନେ ତ ସମାଜରେ ପତିତ, ନୀଚ, ଅଛୁଆଁ ମଧ୍ୟରେ ଗଣା ଯାନ୍ତି ନାହିଁ । ଏ ନୀତି ନିଆଁ ନିଅ ଘାଇରେ ପାଣି ଗିବା ତୁଲ୍ୟ ଗରିବଙ୍କ ପାଇଁ ସୃଷ୍ଟି ହୋଇଥିବାର ଜଣାଯାଏ । ଆଜିକାଲି ଯେଉଁମାନେ ଛୁଇଁଲେ, ଜାତି ଧର୍ମ, କୂଅ, ମନ୍ଦିର, ଠାକୁର, ମାସ୍

ହୋଇଯାଏ ବୋଲି ଭାବନ୍ତି ସେମାନେ ନିଜ ହୃଦସ୍ପୃଷ୍ଟି ବିବେକକୁ ପଗ୍ଭରି ବୁଝନ୍ତୁ ଜାତି, ଧର୍ମ ଅବା କପରି ଯାଏ ?

ଗୋଟିଏ ପ୍ରବାଦ ଅଛି ଯେ—"ହାଣ୍ଡିରେ ଖାଏ, ଗୋଡ଼ରେ ପଡିଲେ ଗାଧୋଇ ଯାଏ" ସେହିପରି ମୁଁ ଦେଖେ ବିବାହ, ବ୍ରତ ଦେବ-ପୂଜା ଅବା ମଙ୍ଗଳ କାମରେ ପାଣି ତନ୍ତିମାନେ ମଙ୍ଗଳ ବାଜଣା ଢୋଲ ଡ଼ାଙ୍ଗନ୍ତିଏ ନ ମାଇଲେ ମଙ୍ଗଳକାର୍ଯ୍ୟ ସମାଧା ହୋଇପାରେ ନାହିଁ । ପୁଣି ବିବାହ, ବ୍ରତ, ଦେବଯାତ୍ରା, ହାଟ, ବଜାର, ଯାନ, ବାହାନରେ ଛୁଇଁଲେ ଛୁଆଁ ଦୋଷ ଲାଗେ ନାହିଁ, କି ଜାତି ଧର୍ମ ଅବା କିଛି ମାରି ହୁଏ ନାହିଁ । ଅହା! କି ସୁନ୍ଦର ବିଗ୍ଭର, ଏହାକୁହିଁ କହନ୍ତି ସ୍ୱାର୍ଥପର ଅନ୍ଧବିଶ୍ୱାସିମଣି ନୀତି । ଯେଉଁଠାରେ ଦୁଇପଇସା ମିଳିବ, ନିଜର ଉପକାର ହେବ ସେଠାରେ ଛୁଆଁ ଅଛୁଆଁ କିଛି ଧରିଯିବ ନାହିଁ । ଧରିଲେ ଆମରି କାମ ଚଳିବ ନାହିଁ । କଥା ଅଛି,— "କାର୍ଯ୍ୟ ନିମନ୍ତେ ଗଧ ପାଦଧରି, କାର୍ଯ୍ୟ ସରିଲେ ବେଦୀ ମୁହଁ ଯୋଡ଼ି" । ଏହାହିଁ ତ ନୀତି, ଏହାହିଁ ତ ବିଗ୍ଭର ।

ପ୍ରିୟ ସୁହୃଦ ପାଠକବୃନ୍ଦ, ମୁଁ ଗୋଟିଏ ଅଭୂତ ପ୍ରକାର ଲୋକ, ମୋର କଥା ମଧ୍ୟ ଆଶ୍ଚର୍ଯ୍ୟଜନକ, ଆପଣମାନେ ମୋର କଥା ଶୁଣି ମୋତେ ବାଉଳ ବୋଲି କହି ପାରନ୍ତି, ମୋର ସେଥିରେ କିଛି ଯାଏ ଆସେ ନାହିଁ; ମୁଁ ମୋର ବିବେକ ବୁଦ୍ଧିବଳରେ ଜାଣି ପାରୁଛି ଯାହା ସତ୍ୟ, ନିଶ୍ଚିତ ସତ୍ୟ ତାହା କହି ଯାଉଛି ଓ କହିବି; ସେଥିପାଇଁ ଆପଣମାନେ ମୋତେ ଗାଳି ଦିଅନ୍ତୁ, ନିନ୍ଦା କରନ୍ତୁ; ଅପମାନ ଦିଅନ୍ତୁ ମୁଁ ସବୁ ଅକାତରେ ସହିବି ତଥାପି ପ୍ରକୃତ କଥା କହିବାକୁ କଦାପି ପଶ୍ଚାତ୍‌ପଦ ହେବି ନାହିଁ । ମୁଁ ଯେତେବେଳେ ପାଣି, ହାଡ଼ି, ଡ଼ମ, ମେହେନ୍ତର ଅବା ଅଛୁଆଁ ଜାତିମାନଙ୍କୁ ଛୁଇଁ ପକାଏ, ସେତେବେଳେ ଶୁଦ୍ଧିଅଡ଼କୁ ଅନାଏଁ,

ଦେଖେଁ ଯେ, ମୋର ଜାତ, ଧର୍ମ କୁଆଡ଼େ ଗଲା; ପବନରେ ଉଡ଼ିଗଲା ? କି ପାଣିରେ ବୁଡିଗଲା କି ଭାସିଗଲା ? କି ନିଆଁରେ ପୋଡିଗଲା ? ଆଚ୍ଛା, ଗଲା ସେ କେଉଁ ପଥ ଦେଇ ଗଲା ? ଜଳ ପଥରେ କି ସ୍ଥଳ ପଥରେ କି ଆକାଶମାର୍ଗରେ ଗଲା ? ଖୋଜି ଖୋଜି କିଛି ପାଇଲି ନାହିଁ, ତହୁଁ ମୁଁ ଦେଖିଲି ମୋର ଜାତି, ଧର୍ମ, କ୍ରିୟା କର୍ମ, ହସ୍ତ, ପଦ, ଚକ୍ଷୁ ନାସିକା, କର୍ଣ୍ଣ, ରକ୍ତ ମାଂସ, ଅସ୍ଥି, ଚର୍ମ ଆଦି ତ ସମସ୍ତ ଅଛି; ଏସବୁର ଲୁଗାପଟା ସୁଦ୍ଧା ପରିଷ୍କାର ପରିଚ୍ଛନ୍ନ ଭାବରେ ଅଛି, ତେବେ ଗଲା କଣ ? ଯେଉଁଠା ଗଲା ସେଠା କେଉଁଠାରେ ଥିଲା ? କିପରି ଗଲା ? କି ରୂପରେ ଗଲା ? କେହି ବିଜ୍ଞବ୍ୟକ୍ତି ମୋତେ କହିଦେଇ ମୋର ମନରୁ ସନ୍ଦେହ ଦୂର କରିବେ କି ? ମୋର ଜ୍ଞାନ ବିବେକ ଦ୍ୱାରା ଦେଖୁଛି, ଶୁଣୁଛି, ଅନୁଭବ ମଧ୍ୟ କରୁଛି ଯେ ହିନ୍ଦୁଧର୍ମ ଅତି ମହାନ୍ ପବିତ୍ର, ଯାହାର ଗୁଣ; ମନୁଷ୍ୟ କଥାରେ କଲମରେ ବର୍ଣ୍ଣିତ ହୋଇ ନ ପାରେ ତାହା କଦାପି ଛୁଆଁ ଛୁଇଁ ଦ୍ୱାରା ମାରା ବା ଅପବିତ୍ର ହୋଇ ପାରେ । ସ୍ତୋତ୍ର ଅଛି—" ଅପବିତ୍ରଃ ପବିତ୍ରୋବା ସର୍ବାବସ୍ଥାଂ ଗତୋପିବା, ଯଃ ସ୍ମରେତ୍ ପୁଣ୍ଡରୀକାକ୍ଷ ସଃ ବାହ୍ୟାଭ୍ୟନ୍ତର ଶୁଚି " ଏବଂ ପାପୋହଂ ପାପକର୍ମାହଂ ପାପାତ୍ମା, ପାପସମ୍ଭବା ତ୍ରାହିମାଂ ପୁଣ୍ଡରୀକାକ୍ଷ ସର୍ବ ପାପୋ ହରେ ହରି ।" ଇତ୍ୟାଦି ମନ୍ତ୍ର ବଳରେ ଯେଉଁ ହିନ୍ଦୁ ପାପୀ ଦେହରୁ ପାପ ଦୂର କରିପାରେ, ଅଶୁଚି ହିନ୍ଦୁ ପବିତ୍ର, ପତିତଙ୍କୁ ଉଦ୍ଧାର କରିପାରେ ଏବଂ ଯେଉଁ ମନ୍ତ୍ର ଶ୍ଳୋକବଳରେ ମୃତ ପିତୃ ପିତାମହଙ୍କ ପ୍ରେତାତ୍ମାଙ୍କୁ ଇହଲୋକରୁ ପିଣ୍ଡଦାନ କରି ପରଲୋକରେ ପ୍ରାପ୍ତ କରାଇ ଥାଆନ୍ତି । ଅତଏବ, ନିର୍ଜୀବ ମାଟି, କାଠ ପଥର ପ୍ରଭୃତିକୁ ସଜୀବ ଓ ସଜୀବ ଦେବତା କରାଇ ପାରନ୍ତି ପ୍ରାୟଶ୍ଚିତ୍ତ ଦ୍ୱାରା ପାପ, ଦାନ ଦ୍ୱାରା ଦୁର୍ଗତି ଖଣ୍ଡନ କରିପାରନ୍ତି ସେ ହିନ୍ଦୁ କି କେବେ ପାଣ, ମେହେନ୍ତର

ଅନ୍ଧଙ୍କୁ ଛୁଇଁଲେ ତାହାର ଜାତି, କୁଳଧର୍ମ ଅପବିତ୍ର, ପତିତ, ନଷ୍ଟ ଭ୍ରଷ୍ଟ ହୋଇ ଯାଇ ପାରେ ? ଏହା ବଡ଼ ଅସମ୍ଭବ ଓ ହାସ୍ୟାସ୍ପଦ ! ଯେଉଁ ଉନ୍ନତଶୀଳମାନେ ଛୁଇଁଲେ ଜାତି, ଧର୍ମ, କୃଅ, ମନ୍ଦିର, ଠାକୁର ମାରି ହୁଏ ବୋଲି କହନ୍ତି, ଭାବନ୍ତି, ପ୍ରମାଣ କରନ୍ତି ସେମାନେ ହିନ୍ଦୁ ଧର୍ମକୁ, ଶାସ୍ତ୍ରକୁ, ଆଚାର, ଜାତିନୀତିକୁ ଅଯଥା ବୃଥା, ନିନ୍ଦିତ, ଦୂଷିତ ଓ ଠକାମି ବୋଲି ପ୍ରମାଣ କରାଉ ନାହାନ୍ତି କି ? ଆଜିମନା ହିନ୍ଦୁଙ୍କର ଏହି ପ୍ରକାର କୁରୀତି, କୁସଂସ୍କାର ଦେଖି ତ ଅନ୍ୟ ସାମ୍ପ୍ରଦାୟିକମାନେ ପବିତ୍ର ହିନ୍ଦୁ ଜାତି ଓ ଧର୍ମର ନାନାପ୍ରକାର କୁତ୍ସା ସମାଲୋଚନା କରୁଥାନ୍ତି । ନଚେତ୍ ପବିତ୍ର ହିନ୍ଦୁ ଧର୍ମର ସମାଲୋଚନା କରି ଦୋଷ ଦେଖାଇବା ପାଇଁ ପୃଥିବୀରେ ଏପରି କେହି ବ୍ୟକ୍ତି ନାହାନ୍ତି । ତାହାର ଜ୍ୱଳନ୍ତ ପ୍ରମାଣ ସ୍ୱାମୀ ବିବେକାନନ୍ଦ ଦେଖାଇ ଯାଇଅଛନ୍ତି ।

ଯେଉଁ ହିନ୍ଦୁ ଜାତି ପବିତ୍ର ଅହିଂସା, ସତ୍ୟ, ଶାନ୍ତି, କ୍ଷମା, ଦୟା, ଶମ, ନିୟମ, ଆସନ, ପ୍ରାଣାୟାମ, ଧ୍ୟାନ, ଧାରଣା ପ୍ରଭୃତି କଠୋର କ୍ରିୟାର ସାଧନ ଦ୍ୱାରା ବ୍ରହ୍ମଚର୍ଯ୍ୟ ରକ୍ଷା କରି ଅମିତ ତେଜ, ବୀର୍ଯ୍ୟ ବଳରେ ଦୁଷ୍ଟ ଚପଳ ଇନ୍ଦ୍ରିୟ ଓ ଚନ୍ଦ୍ର, ସୂର୍ଯ୍ୟ, ଯମ, ଅଗ୍ନି, ବରୁଣ, ପବନ ଆଦି ଦେବତା ମାନଙ୍କୁ ଆୟତ୍ତ କରି ପାରନ୍ତି ଓ ସ୍ତମ୍ଭନ, ମୋହନ ଉଚ୍ଚାଟନ, ଆକର୍ଷଣ, ବଶୀକରଣ, ମାରଣ ପ୍ରଭୃତି ଅସାଧ୍ୟ କାର୍ଯ୍ୟମାନ ସାଧନ କରି ପାରନ୍ତି; ପୁଣି ସାଧନା ବଳରେ ଏକ ସ୍ଥାନରେ ବସି ସ୍ୱର୍ଗ, ମର୍ତ୍ତ୍ୟ, ପାତାଳ ତ୍ରିପୁର ଓ ପଶୁ, ପକ୍ଷୀମାନଙ୍କ କଥାବାର୍ତ୍ତା ବୁଝି କହି ପାରନ୍ତି ଏବଂ ତ୍ରିଭୁବନକର୍ତ୍ତା ସତ୍ୟ, ଶୁଦ୍ଧ, ପୂତ, ସନାତନ, ସଚ୍ଚିଦାନନ୍ଦପୂର୍ଣ୍ଣ ପରଂବ୍ରହ୍ମଙ୍କୁ ଚିହ୍ନି ଆୟତ୍ତ କରି ପାରନ୍ତି । ଯାହାର ଇଷ୍ଟଦେବତା ସଦା ପୂତ, ସଦା ଶୁଚି ଯେ କି ଦଉଡରେ ବାନ୍ଧି, ହାଡଆଗରେ

କାହିଁ, ନିଆଁରେ ପୋଡ଼ି, ଜଳରେ ବୁଡ଼ି କି ପବନରେ ଉଡ଼ି ଯାଇପାରେ ନାହିଁ । ସଦା ଶୁଦ୍ଧ, ନିର୍ମଳ ଭାବରେ ବର୍ତ୍ତମାନ ଥାନ୍ତି ସେ କଦାପି କୁଆଁଡ଼ୁଇଁ ଦ୍ୱାରା ପତିତ, ନଷ୍ଟ, ଭ୍ରଷ୍ଟ ହୋଇପାରେ ନାହିଁ । ଯାହାର କ୍ଷମତା ଅଛି ନିଜର ତେଜ ବଳରେ ଅନ୍ୟକୁ ପବିତ୍ର କରିପାରେ, ସେ କଦାପି ଅପବିତ୍ର ହୋଇ ନ ପାରେ । ଯେ ଅପବିତ୍ର ହୋଇପାରେ ସେ କଦାପି ଅନ୍ୟକୁ ପବିତ୍ର କରି ନ ପାରେ ।

ବେଶ୍ୟାପୁତ୍ର ବଶିଷ୍ଠ, କୈବର୍ତ୍ତୁଣୀର ପୁତ୍ର ପରାଶର ଏମାନେ କଠୋର ସାଧନା ଓ କର୍ମବଳରେ ମହାପୁରୁଷ ଆଖ୍ୟା ଧରି ଆଜି ଘରେ ଘରେ ପୂଜା ପାଉଅଛନ୍ତି, ତାଙ୍କୁ ତ କେହି ନିନ୍ଦା କରିବାର ଦେଖାଯାଏ ନାହିଁ, ପୁଣି ରାମଚନ୍ଦ୍ର ଗୁହକ-ଚଣ୍ଡାଳ ଘରେ; ଶ୍ରୀକୃଷ୍ଣ, ବିଦୁର, ଜାର୍-ଶ୍ୱର ଘରେ ଭୋଜନ କରିଥିଲେ, ଏମାନେ ତ ପତିତ ମଧ୍ୟରେ ଗଣାଯାନ୍ତି ନାହିଁ । ଆଜିକାଲି ଯେଉଁମାନେ ରାମ, କୃଷ୍ଣ, ଚୈତନ୍ୟଙ୍କି ଈଶ୍ୱରଙ୍କର ଅବତାର ବୋଲି ଘରେ ଘରେ ମନ୍ଦିରେ ମନ୍ଦିରେ ପୂଜା କରୁଛନ୍ତି, ସେମାନେ ତାଙ୍କର ମହତଗୁଣ ଓ ଉପଦେଶକୁ ଅନୁକରଣ କରି ପାଳନ କରନ୍ତି କି ? ନା କେବଳ ଉପରେ ଅତି ଭକ୍ତି ଦେଖାଇ ହୁଅନ୍ତି । ଯଦି ରାମ, କୃଷ୍ଣ, ଚୈତନ୍ୟଙ୍କୁ ଈଶ୍ୱର ବା ଆଦର୍ଶ ପୁରୁଷ ବୋଲି ସ୍ୱୀକାର କଲ ତେବେ ତାଙ୍କର ଶାରୀରିକ, ମାନସିକ, ନୈତିକ, ରାଜନୈତିକ, ସାମାଜିକ ଏବଂ ପ୍ରମାନ ଚର୍ଚ୍ଚା କରି, ସେମାନେ ଦେଶକୁ ଯେଉଁ ଆଦର୍ଶ ଦେଖାଇ ଯାଇଅଛନ୍ତି, ସେ ପବିତ୍ର ଓ ଆଦର୍ଶ ପଥ ଅନୁସରଣ କର । ଖାଲି ରାମ ରାମ, କୃଷ୍ଣ କୃଷ୍ଣ କହି କହି ମରିଗଲେ ଗତି ମୁକ୍ତି ପାଇବ ନାହିଁ । ତାଙ୍କର ଉପଦେଶ ଅନୁସାରେ କାର୍ଯ୍ୟ କର ତେବେ ନିଜର ଜାତିର ସମାଜର ଓ ଦେଶର ଗତି ମୁକ୍ତି ହେବ ।

ଉଚ୍ଚ ଜାତିମାନେ ଛୁଇଁବୁ ଛୁଇଁବୁ କହି ସାତକୋଟି ଲୋକଙ୍କୁ ଅଲଗା କରି ରଖିଥିବାରୁ ଜାତି, ଧର୍ମ ରକ୍ଷା ନ ହୋଇ ବରଂ ନଷ୍ଟ ଓ ଭ୍ରଷ୍ଟ ହେଉଅଛି । ସେମାନେ ସମାଜର କର୍ନାଡନା ଓ ତାଡ଼ନା ସହି ନ ପାରି ଜାତି, ଧର୍ମ, କ୍ରିୟାକର୍ମ ନଷ୍ଟ କରି ମୁସଲମାନ ଓ ଖ୍ରୀଷ୍ଟାନ ହୋଇ ଯାଉଅଛନ୍ତି । ଯେଉଁବେଳେ ସେମାନେ ଆମର ହିନ୍ଦୁସମାଜରେ ଥିଲେ ମାଳା ଚନ୍ଦନ ଦେଉଥିଲେ, ଦେବତା ବ୍ରାହ୍ମଣ ପୂଜୁଥିଲେ, ଆମ୍ଭମାନଙ୍କୁ ମାନୁଥିଲେ ଦଣ୍ଡବତ ହେଉଥିଲେ । ଆମ୍ଭେ ସେମାନଙ୍କୁ ଅନାଦର କରୁଥିଲୁ, ଛୁଇଁବୁ ଛୁଇଁବୁ କରି ଦୂରରୁ ଫିଙ୍ଗି ଦେଉଥିଲୁ । ମୁସଲମାନ ଖ୍ରୀଷ୍ଟାନ ହୋଇଗଲେ ଓଲଟି ଆମ୍ଭେମାନେ ସେମାନଙ୍କୁ ଦଣ୍ଡବତ କରୁଛୁ, ଛୁଉଁଛୁ, ଓ ବସିବାକୁ ଆସନ ମଧ୍ୟ ଦେଉଅଛୁ । ଏ ଅନ୍ୟାୟ, ଅବ୍ୟବସ୍ଥା ନୀତିକୁ ସମାଜରୁ ନ ଉଠାଇଲେ ଜାତି, ଧର୍ମ, ସମାଜ ଓ ଦେଶ ଛାରଖାର ହୋଇଯିବ ।

ଏହିପରି ସମାଜରେ ଯେ କେତେ ଅବର୍ଜନା ପୂରି ରହିଛି, ତାହାର ସୀମା ନାହିଁ । ସେ ସମସ୍ତ ପ୍ରତି ଦୃଷ୍ଟି ଦିଆ ନ ଯାଇ ଅଯଥା ଛୁଆଁ ଅଛୁଆଁ ପ୍ରତି ସାମାଜିକମାନଙ୍କର ଏତେ ଲୋଭ କାହିଁକି ? ସମାଜକୁ ନିଷ୍କଳଙ୍କ ଓ ପବିତ୍ର ରଖିବା ପାଇଁ ନିମ୍ନଲିଖିତ କୁସଂସ୍କାରଗୁଡ଼ିକ ଦୂର କରିବା ଦରକାର । ଯଥା:—

୧ । ପୁରୁଣା ମାଟିହାଣ୍ଡିକୁ ବାହାରିଗଲେ ସେ ହେଲା, ଛୁଆଁ । ସେ ଭାଙ୍ଗିଯାଇ ଖପରା ହୋଇଗଲେ ତାକୁ ଛୁଇଁଲେ ଦୋଷ ନାହିଁ ।

୨ । ଗୋରୁ ହାଡ଼ ପଦାରେ ପଡ଼ିଥିଲେ, ଛୁଇଁଲେ ଛୁଆଁ ହୁଅନ୍ତି, ହାଡ଼ଚୂର୍ଣ୍ଣରେ, ଲୁଣ, ଚିନି, ଫାଇନ୍ ହେଉଛି, ସେଗୁଡ଼ିକ ଅପବିତ୍ର ପଦାର୍ଥ ନୁହେଁ ? ତାହା କିପରି ଖିଆ ଯାଉଛି ?

୩ । ଗୋରୁ, ଦୁମ୍ବ ଆଦି ସବୁଜୀବଙ୍କ ଚର୍ବି ମିଶ୍ରିତ ଘିଅ ଖାଇଲେ କଣ ଜାତି ଧର୍ମ ନଷ୍ଟ ହୁଏ ନାହିଁ ? ଚର୍ବି ତ ପଶୁ ମାଂସ ମଧ୍ୟରୁ ବାହାରେ ?

୪ । ଗୋରୁ, ଦୁମ୍ବ ଆଦି ସବୁଜୀବଙ୍କ ଚର୍ବି ଦିଆ ଲୁଗା ପିନ୍ଧିଲେ କଣ ଜାତି, ଧର୍ମ ଯାଏ ନାହିଁ ?

୫ । ସତ୍ରାପଖଣ୍ଡରେ ଏକ ପିଆଲାରେ ମଦ, ମାଂସ ମଦତ ଖଣ୍ଡରେ ଏକ ହୁକାରେ ପାଣି, ବ୍ରାହ୍ମଣ ଖାଇଲେ ସେଠାରେ କଣ ଜାତି ଧର୍ମ ଯାଏ ନାହିଁ ?

୬ । ବ୍ରାହ୍ମଣ, କରଣ ଆଦି ଯେ କୌଣସି ଉଚ୍ଚଜାତିଙ୍କ ଘରେ ପିଲାଟିଏ ଜନ୍ମିଲେ, ଜନ୍ମମାନେ ୨୫ ଦିନ ମାଆଠାରୁ ଦୁଧ ଖାଏ ନାହିଁ, ପାଣ ହେଉ; ନେହକାର ହେଉ ଯେକୌଣସି ଜାତିର ଦୁଗ୍ଧବତୀ ସ୍ତ୍ରୀ ଠାରୁ ଦୁଗ୍ଧ ଆଣି ଖୁଆଇ ବଞ୍ଚାଇବାକୁ ହୁଏ । ଯଦି ମାଆର ଦୁଧ ନ ହୁଏ, ତାହାହେଲେ ୫ ବର୍ଷ ପର୍ଯ୍ୟନ୍ତ ଅଛୁଆଁ ହେଉ, ଛୁଆଁ ହେଉ ଅନ୍ୟ ସ୍ତ୍ରୀଠାରୁ ଦୁଧ ଖାଇ ବଞ୍ଚିବାକୁ ହୋଇଥାଏ, କାହିଁ ସେ ପିଲା ତ ଅନ୍ୟ ଜାତି ହୋଇ ଯାଏ ନାହିଁ ?

୭ । ପୁଣି ତୀର୍ଥକ୍ଷେତ୍ର, ବଣ, ଜଙ୍ଗଲ ଆଦିରେ ଓ ଜାତି ଅଜାତି ବାରଣ ଥିବାର ଦେଖାଯାଏ ନାହିଁ କମା ଦୁର୍ଭିକ୍ଷସମୟରେ ତ ଯେ କୌଣସି ଘରୁ ବା ହାତରୁ ଖାଇଲେ ଜାତି ଯାଏ ନାହିଁ ?

୮ । ଚମାରଠାରୁ ଡାଲି ଖାଇଲେ, ନୀଚ ଅଛୁଆଁ ଜାତିଙ୍କ ବନ୍ଧନ ଗୁଡ଼ଲ ହାଟ, ବଜାର, ଖଲାରୁ କିଣ ଖାଇଲେ, ଧାଣ ବାଉରୀ କାନ୍ଧେଇଥିବା ସବାରି ପାଲିଙ୍କିରେ ବସି ପାନ ଜଳଖିଆ ଖାଇଲେ ଘାଡ଼ୀଙ୍କ ହାତରୁ ଲୁଣପାଣିମିଶା ମୁଡ଼ୀ ଖାଇଲେ ତ ଜାତି, ଧର୍ମ ନଷ୍ଟ ହୁଏ ନାହିଁ ? ଅତଏବପ୍ରମାଣିତ ହେଉଛି ଖାଦ୍ୟଦ୍ରବ୍ୟ ଦ୍ୱାରା ଜାତି ଯାଏ ନାହିଁ ।

୯ । ଏଥିରୁ ପାଠକେ ଅନୁମାନ କରିବେ ନାହିଁ ଯେ ଲେଖକର ମତ—ଗୋରୁ, ଘୁଷୁରି ଆଦି ମାଂସ ଖାଇବା ଏବଂ ସବୁ ଜାତି ଏକ ସଙ୍ଗରେ ଖାଇବା । ଏହା କଦାପି ମୋର ମତ ନୁହେଁ କି ମୁଁ ତାହା କଦାପି କହିବି ନାହିଁ । ମୋର ମତ ଭାରତ ଗ୍ରୀଷ୍ମପ୍ରଧାନ ଦେଶ ଗୋରୁ, ଘୁଷୁରି, ମାଂସ ତ ଦୂରର କଥା କୌଣସି ମାଂସ, ଏପରିକି ମାଛ ସୁଦ୍ଧା ଖାଇବା ଉଚିତ ନୁହେଁ; ବଚନ ଅଛି—

'ସ୍ୱଚ୍ଛନ୍ଦ ବନଜାତେନ ଶାକେନାପି ପ୍ରପୂର୍ଯ୍ୟତେ,

ଅସ୍ୟଦଗ୍ଧୋ ଦରସ୍ୟାର୍ଥେ କଃ କୁର୍ଯାତ୍ ପାତକଂ ମହତ୍ ।"

ଅତଏବ ସ୍ୱଚ୍ଛନ୍ଦ ବଣରେ ଜନ୍ମୁଥିବା ଶାଗ ଫଳ ମୂଳ ଦ୍ୱାରା ଯେଉଁ ପୋଡ଼ା ପେଟ ପୂରଣ ହେବ, ତାହା ପାଇଁ ଜୀବବଧ କରି କାହିଁକି ମହାପାତକ ଅର୍ଜନ କରିବ । ମାଛ, ମାଂସ ଖାଇବା ଦ୍ୱାରା ରୋଗ ହେଲେ, ସ୍ୱାସ୍ଥ୍ୟର ହାନି ଘଟେ । ଏକ ପଙ୍ଗତରେ ଖାଇବା ସମାଜର ନିୟମତ ଦୂରର କଥା, ସ୍ୱାସ୍ଥ୍ୟବିଜ୍ଞାନର ନିୟମ ହେଉଛି ଯେ ବାପ, ପୁଅ, ମାଆ ଝିଅ, ଭାଇ ଭାଇ ସୁଦ୍ଧା ସଙ୍ଗରେ ଖାଇବାର ନୁହେଁ । ଏକ ସଙ୍ଗରେ ଖାଇଲେ ଜାତି ଯାଏ ନାହିଁ, ସ୍ୱାସ୍ଥ୍ୟର ହାନି ଘଟେ । ଅନେକ ସଂକ୍ରାମକ ରୋଗ ଅଛି ଯାହାକି ଖାଦ୍ୟ ଦ୍ୱାରା ଏକ ଦେହରୁ ଅନ୍ୟ ଦେହକୁ ବ୍ୟାପି ଯାଇ ପାରେ । ତେଣୁ କାହାରି ସଙ୍ଗରେ ବି ଖାଇ ସାରି ଛାଡ଼ି ଯାଇଥିବା ଉଚ୍ଛିଷ୍ଟ କାହାର ଖାଇବା ଉଚିତ ନୁହେଁ । ଏଣୁ ଏହା ମୋର ମତ ଓ ନୀତିବିରୁଦ୍ଧ ।

ଆଉ ରହିଲା କାର୍ଯ୍ୟକଳାପ ନେଇ ଛୁଆଁଛୁଇଁ ଜାତି, ଧର୍ମ ମାରିକଥା—କିଏ କହୁଛି ପାଣ, ଡ଼ମ, ମେହେନ୍ତରମାନେ ଗୋରୁଚମଡ଼ା କାଟନ୍ତି, ଗୋରୁ, ଘୁଷୁରି ଶ୍ରେଣୀ କଚ୍ଛପ ମାଂସ ଖାନ୍ତି କିଏ କହୁଛି ସେମାନେ ପାଇଖାନା ସଫା କରନ୍ତି, ଇତ୍ୟାଦି ।

୧ । ସେମାନେ ଯଦି ଚମଡ଼ା ନ କାଟନ୍ତି, ତାହାହେଲେ ତମର ମୃଦଙ୍ଗ, ପଖାଉଜ, ଢୋଲ, ତବଲା, ଢୋଲକ ରହିବ କେଉଁଠି ?; ତମର ଯେ କୀର୍ତ୍ତନ, ଯାତ୍ରା, ଥିଏଟର ସବୁ ବନ୍ଦ ହୋଇଯିବ ଏବଂ ଯେଉଁ ଘୋଡା ମାଡ଼ି, ମନବେଗ ପକେଟରେ ପକାଇ, ରିଷ୍ଟୱାଚ ହାତରେ ବାନ୍ଧି ବାବୁଗିରି ଦେଖାଉଅଛ ତାହା ହୋଇ ପାରିବ କି ? ଏଥିରୁ ଜଣାଯାଉଛି ଅପବିତ୍ର, ମଇଳା ପଦାର୍ଥଗୁଡ଼ିକ ପରିଷ୍କାର ହୋଇଗଲେ ଦୋଷ ଲାଗିବା ନାହିଁ ପରା ?

୨ । ମୁସଲମାନମାନେ ଗୋମାଂସ ଓ ସାହେବମାନେ ଗୋରୁ, ଘୁଷୁରି ମାଂସ ଖାନ୍ତି । ବଙ୍ଗଦେଶରେ କେତେ ବଙ୍ଗାଳି ଗେଣ୍ଡା ଓ କଚ୍ଛପ ମାଂସ ଖାନ୍ତି । କାହିଁ ସେମାନଙ୍କୁ ଛୁଇଲେ ତ ଦୋଷ ବା ପାପ ହୁଏ ନାହିଁ ।

୩ । ଗର୍ଭବତୀ ସ୍ତ୍ରୀମାନେ ପ୍ରସବ କରିବା ସମୟରେ ଯେଉଁମାନେ ଧାଈ ହୋଇ ତାହାର ନାଳ, ରକ୍ତ, ମଳ, ମୂତ୍ର ସଫା କରନ୍ତି; ପୁଣି ମାତା ପିତା ଓ ସେବକ ସେବିକାମାନେ ପୁତ୍ର କନ୍ୟା ଓ ରୋଗୀଙ୍କର ମଳ, ମୂତ୍ର ସଫା କରିବା ଦ୍ୱାରା ତ ପତିତ ବା ନୀଚ ହୋଇ ଯାନ୍ତି ନାହିଁ । ତେବେ ମେହେନ୍ତର ପାଇଖାନା, ରାସ୍ତା, ଘାଟ, ମଇଳା ଆଦି ପିତା ମାତା ପରି ନିର୍ବିକାର ଭାବରେ ସଫା କରି ଦେଇ ସମାଜକୁ ସ୍ୱାସ୍ଥ୍ୟରକ୍ଷା ସମ୍ବନ୍ଧରେ ସାହାଯ୍ୟ କରନ୍ତି, ସେମାନେ କାହିଁକି ଅଛୁଆଁ ବା ପତିତ ହେବେ ?

୪ । ଧୋବା ଋତୁମତୀ ସ୍ତ୍ରୀଙ୍କର ମାସିକ ଲୁଗା; ଛୁତକା ଓ ମୃତକା ଲୁଗା ଆଦି ଅପରିଷ୍କାର; ମଇଳା ଲୁଗା ସଫା ଓ ଶୁଦ୍ଧ କରିଦେବ, ତାକୁ ଛୁଇଁବାରେ ଦୋଷ କଣ ?

୫ । ଗୋରୁଙ୍କ ଦେହରେ ଘା, ବଣ୍ଟୋଠ ଅଧି ହେଲେ ଗର୍ଜ୍ଜଡ଼ୁ ଆଦ ଗୋରକ୍ଷକମାନେ ଚମଡ଼ା କାଟି ପକାନ୍ତି ସେମାନେ ବ ପ ଣ ହାଡଙ୍କ ଭଳଅ ନାଚ ବା ପଡ଼ନ୍ତ ହୁଅନ୍ତି ନାହିଁ ?

୬ । ଗୋସ୍ୱାମୀ, ଘାସ, କୁଣ୍ଡା, ଦେଇ ଦେହାକନ କର ବାନ୍ଧ ପକାଇଥିବା ଅବସ୍ଥାରେ ଗୋରୁଟି ମରିଗଲେ ବନ୍ଧନକର୍ତ୍ତାଙ୍କୁ ଦୋଷ ଲାଗେ, ମାତ୍ର ଯେଉଁମାନେ, ଚୋରୁଙ୍କୁ ଗୋଖାଦକ ହାତରେ ଜାଣି ଶୁଣି ଦେଉଛନ୍ତି ଏବଂ ଜାଣି ଶୁଣି ଗୋଚର ଭାଙ୍ଗି ଶେଷ କରନ୍ତି ସେମାନଙ୍କୁ ଦୋଷ ଲାଗେ ନା ? ଏ ସମୟରେ ଗୋରକ୍ଷଣୀ ସମାଜକର୍ତ୍ତାମାନେ କେଉଁଠି ଥାନ୍ତି ?

୭ । ପୁଣି ବିଧବାମାନେ ପୁନର୍ବିବାହ କଲେ ମହାପାପ ହୁଏ । ମାତ୍ର ଗୃହକୋଣରେ ଭ୍ରୂଣହତ୍ୟା କଲେ ସେଥିା ପାପ ମଧ୍ୟରେ ଧରାଯାଏ ନାହିଁ; କାରଣ ଭାଗବତରେ ଯେ ଲେଖାଅଛି- "ସ୍ତ୍ରୀବଧ ଗର୍ଭିଣୀ ଶିଶୁବଧ, ପାପଙ୍କ ମଧ୍ୟେ ପରମାଦ" । ଏତେବେଳକୁ ଭାଗବତର ପଦ ମନେ ପଡ଼ୁନାହିଁ । ଖାଲି ଛୁଇଁବା ଦୋଷ ଉଠାଇ ଦେବା କଥା ପଡ଼ିଲେ ଭାଗବତ ପଦ ବାହାରେ ଯେ— "ସବେ ହୋଇବେ ଏକାକାର, ନ ଥିବ ବେଦର ବିଚାର, ତେଣୁ ହୋଇବେ ଅଳ୍ପାୟୁଷ; ପାପେ ସକଳେ ଯିବେ ନାଶ ।"

ଆମ ହିନ୍ଦୁସମାଜର ଏହି ସମସ୍ତ କୁସଂସ୍କାରଜଡ଼ିତ କଳଙ୍କ ଦେଖି, ସ୍ୱାମୀ ବିବେକାନନ୍ଦ କହିଅଛନ୍ତି, ଆଜକାଲି ହିନ୍ଦୁମାନଙ୍କର ଜାତି, ଧର୍ମ ବେଦରେ ନାହିଁ କି ପୁରାଣରେ ନାହିଁ, ଭକ୍ତିରେ ନାହିଁ କି ମୁକ୍ତିରେ ନାହିଁ, ବିଗ୍ରହମାର୍ଗରେ ନାହିଁ, କି ଜ୍ଞାନମାର୍ଗରେ ନାହିଁ, ଅଛି ଯାଇ କେବଳ ଚୂଲିରେ ଏବଂ ମୋତେ ଛୁଁ ନା, ଛୁ ନା, ଏଁ ଏଁ ଖବରଦାର ମୋତେ ଛୁଁ ନା, ବାପ୍ ଏହି ହେଉଛି ଜାତି; ଏହି

ହୋଇଛି ଧର୍ମ, ଏପରି ବାମାଚାରୀ ଛୁଁ ନା ଛୁଁ ନା ଜୀବନ ନ ଗଲେ ରକ୍ଷା । 'ଛୁଁ ନା' କଥାରୁ ଜଣାଯାଏ ରକ୍ଷଣଶୀଳମାନଙ୍କର ଜାତି, ଧର୍ମ, ଜୀବନ ସେଥିରେ ଯେପରି ବନ୍ଧା ଥାଏ । "ଅମୃତତ୍ ସର୍ବଭୂତେଷୁ" ଏ ନୀତିଟି କଣ ଚିରଦିନ ପୋଥିରେ ବନ୍ଧା ଥିବ ? ଯେଉଁମାନେ ଅନ୍ୟର ଶ୍ୱାସରେ ଅପବିତ୍ର ହୋଇ ଯାଉଅଛନ୍ତି ସେମାନେ ଅନ୍ୟକୁ ପବିତ୍ର କରିବେ କଣ ? ଛୁଁ ନା, ଛୁଁ ନା ଗୋଟିଏ ମାନସିକ ବ୍ୟାଧି, ଏ ବ୍ୟାଧିରୁ ଅଲଗା ହୋଇ ବଞ୍ଚି ରହିବା ଦରକାର ।

ଏଠାରେ ସମାଜର ଶୃଙ୍ଖଳକମାନଙ୍କୁ ଆଉ କେତୋଟି କଥା କହି ବିଷୟର ଉପସଂହାର କରିବି; ଆଶା ବ୍ରାହ୍ମଣ, କରଣ, ଜମିଦାର, ମହାଜନ ପ୍ରଭୃତି ସମାଜକର୍ତ୍ତାମାନେ କହିବେ କି ? ଆପଣମାନେ କାହା ସକାଶେ ବଡ଼ଲୋକ, ବଡ଼ଜାତି ବୋଲାଉ ଅଛନ୍ତି ? କିଏ ତମକୁ ବଡ଼, ଧନୀ, ମାନୀ କରାଇ ଅଛି ? କାହା ସକାଶେ ତମେ ଆଜି ସମାଜରେ ମୁଣ୍ଡ ଟେକି ଗର୍ବ କରି ଚାଲୁଅଛ ? କିଏ ତୁମ୍ଭର ଇଜ୍ଜତ, ମହତ ସମ୍ଭାଳି ଅଛି ? ଯଦି ତନ୍ତିମାନେ ଲୁଗା ନ ବୁଣନ୍ତି, ଧୋବାମାନେ ଲୁଗା ସଫା ନ କରନ୍ତି, କୁମ୍ଭାର ହାଣ୍ଡି ନ ଗଢ଼ନ୍ତି, ପାଣ, ହାଡ଼ି, ଡମ, ମେହେନ୍ତରମାନେ ବାଜା ନ ବଜାନ୍ତି, ପାଛିଆ, ଢୁଣ୍ଡେଇ ନ ବୁଣନ୍ତି, ମୂଲ ମଜୁରି ନ ଲାଗନ୍ତି, ପାଇଖାନା, ରାସ୍ତା, ଘାଟ ସଫା ନ କରନ୍ତି, ତେବେ ତମର ଇଜ୍ଜତ, ମହତ, ବଡ଼ପଣିଆ, ବାବୁଗିରି ସବୁ ଦାଣ୍ଡରେ ପଡ଼ିଯିବ ନାହିଁ କି ? ସେହି ଅଛୁଆଁ ଜାତିମାନେ ପରା ତମର ଅନ୍ନ-ବସ୍ତ୍ର ଯୋଗାଡ଼ କରୁଛନ୍ତି ? ମୂଲ ମଜୁରି ଲାଗି ଶୃଷବାସ କରି ଇଜ୍ଜତ ମହତ ସମ୍ଭାଳି ଓ ବଡ଼ପଣିଆ ଓ ଟେକ ଦେଖାଇ ଅଛନ୍ତି । ସେମାନେ ଇଚ୍ଛା କଲେ ତମ ବଡ଼ପଣିଆ ଟେକ ଭାଙ୍ଗି ଦେଇ ଏକାଦିନକେ ତମ

ମନ୍ତ୍ର ଉଲକ୍ କରଦେବେ ନାହିଁ ତ ? ବର୍ତ୍ତମାନ ଗାନ୍ଧି ଚକ୍ର ଦେଖ; ଯୁଗର ଗତ କପର ଲୁଆଡ଼କୁ ଗଡ଼କର ଗଲୁଛି, ଯୁଗର ଗତ ଅନୁସାରେ କାର୍ଯ୍ୟ ନ କଲେ ତମକୁ କେହି ପଗ୍ଋରବେ ନାହିଁ ଯେ ।

ଦେଶର ନୀଚଶ୍ରେଣୀର ଲୋକଙ୍କୁ ଅଛୁଆଁ ବୋଲି କହି ଅଲଗା କର ରଖିବା ଆମ୍ଭମାନଙ୍କର ଗୋଟିଏ ମହାପାପ । ଏହା ଜାତର ଓ ଦେଶର ଅବନତର ଗୋଟିଏ ମୂଳ କାରଣ ... ପର୍ଯ୍ୟନ୍ତ ଭାରତର ସର୍ବସାଧାରଣ ଲୋକ ଶିକ୍ଷିତ ନ ହୋଇଛନ୍ତି ... ଲୋକ ବଡ଼ଲୋକମାନେ ଏ କଥା ଭଲକରି ନ ବୁଝିଛନ୍ତି, ସେ ପର୍ଯ୍ୟନ୍ତ ଯେତେ ରାଜନୈତିକ ଆନ୍ଦୋଳନ କଲେ ସୁଦ୍ଧା କିଛି ହେବନାହିଁ । ଯେଉଁମାନେ ଭାରତକୁ ପୁନରୁଦ୍ଧାର କରିବାକୁ ଗ୍ଋହାନ୍ତି ସେମାନେ ଜୋର କରି ସେମାନଙ୍କ ସମାଜ ମଧ୍ୟରେ ପଶି ସେମାନଙ୍କ ପାଇଁ ବହୁତ କାମ କରିବାକୁ ପଡ଼ିବ ।

ଯେଉଁ ଜାତମାନେ ଏତେଗୁଡ଼ିଏ ଉପାୟରେ ସମାଜକୁ ସାହାଯ୍ୟ କରି ସମାଜର ମଙ୍ଗଳ ଓ ଉପକାର ସାଧନ କରୁଅଛନ୍ତି, ସମାଜ ସେମାନଙ୍କ ଶିକ୍ଷା-ଦୀକ୍ଷା ଅଗ୍ରତ, ସ୍ୱତ, ମୀତ ପ୍ରଭୃତ ପ୍ରତ ସହାନୁଭୂତି ଦେଖାଇ ଉନ୍ନତସାଧନ କରିବା ଏକାନ୍ତ କର୍ତ୍ତବ୍ୟ । ସମାଜର କଦାପି ଉଚିତ ନୁହେ ଯେ ନୀଚ ପତିତଙ୍କୁ ସଦାକାଳ ନୀଚ ଓ ପତିତ କରି ରଖିବା ।

ଉପସଂହାରରେ ମୋର ଶେଷବକ୍ତବ୍ୟ ଏହି ଯେ, ହେ ରକ୍ଷଣଶୀଳ ସାମାଜିକ ହିନ୍ଦୁ ଭାଇମାନେ ବର୍ତ୍ତମାନ ଯୁଗପ୍ରବର୍ତ୍ତକ ମହାତ୍ମା ଗାନ୍ଧୀଜୀ ଯାହା କହୁଅଛନ୍ତି ବିବେକ ବୁଦ୍ଧି ବଳରେ ଓ ସରଳାନ୍ତଃକରଣରେ ସେ କଥା ଭାବ ଚନ୍ତା ଦେଖ; ଆଜି ଜଗତର ଗତି ଆଉ

ଯଥା :—ରୁଷ, ଜାପାନ, ଜର୍ମାନ, ଫ୍ରାନ୍ସ, ଇଂଲଣ୍ଡ, ଅଫ୍ରିକା, ଆମେରିକା ପ୍ରଭୃତ ଦେଶବାସୀମାନେ କେଉଁ ଶକ୍ତି କେଉଁ ନୀତ କେଉଁ କର୍ମ ବଳରେ ଜଗତରେ ସଭ୍ୟ ଓ ସ୍ୱାଧୀନ ହୋଇ ଉଠିଛନ୍ତି ? ଅମ୍ଭମାନଙ୍କର ସେ ଶକ୍ତି ନୀତ କର୍ମ କାହିଁକି କମି ଯାଉଛି ? କି ଉପାୟରେ ଅମ୍ଭେମାନେ ପୁଣି ଅମ୍ଭମାନଙ୍କର ସେ ପୂର୍ବ [illegible]ନୀତ, କର୍ମ ଫେରିପାଇବା ସେହି ଉପାୟ ଏବଂ ପଥ ଅବଲମ୍ବନ [illegible] ମହାପୁରୁଷ ମହାତ୍ମା ଗାନ୍ଧୀଜୀ ସେହି ପଥ ପ୍ରଦର୍ଶନ କରନ୍ତି [illegible] —ଆମେମାନେ ଅଜ୍ଞାନତା ଓ ମୋହ ବଶରୁ ତାହା ଖରାପ ବୋଧ [illegible] ଅଛୁ । ମହାପୁରୁଷମାନେ ତଥା ମହାତ୍ମାଜୀ କୌଣସି ବ୍ୟକ୍ତି, ଜାତ, ସମାଜ ଓ ଧର୍ମକୁ ଖରାପ କରିବାକୁ ଚାହାନ୍ତି ନାହିଁ ସେ ଦେଶ, ଜାତ, ଧର୍ମ ଓ ସମାଜର ଉନ୍ନତ ପାଇଁ, ଲକ୍ଷ ଲକ୍ଷ ଟଙ୍କା ଆୟ ଓ ଲକ୍ଷ ଲକ୍ଷ ଟଙ୍କାର ସମ୍ପତ୍ତି ତ୍ୟାଗ କରି ଶେଷକୁ ପ୍ରାଣ ସୁଦ୍ଧା ତ୍ୟାଗ କରିବାକୁ ବସିଅଛନ୍ତି । ସେ କଦାପି ଅସଙ୍ଗତ ଅଯୌକ୍ତିକ ଅନ୍ୟାୟ କଥା କହି ନାହାନ୍ତି କିମ୍ବା କହୁ ନାହାନ୍ତି । ତାହାଙ୍କ ଉପଦେଶ ମାନ ତାଙ୍କର ଆଦେଶ କାର୍ଯ୍ୟରେ ପରିଣତ କର । ଯଦି ଏ ମହତ୍‌ବାକ୍ୟ ଅବମାନନା କର ତେବେ ଶୁଭଦିନ ପଶୁ, ବା କ୍ରିତଦାସ ଭଳିଆ ପରପଦାନତ ହୋଇ ରହିଥିବ । ତମର ଦୁଃଖର ସୀମା ରହିବ ନାହିଁ । ତୁମ୍ଭର ଦୁଃଖକୁ ଗୁହାରି ମଧ୍ୟ କେହି ଶୁଣିବେ ନାହିଁ । ଅତଏବ ହେ ଭାଇମାନେ ! ତେବେ ସୁଦ୍ଧା ସମୟ ଅଛି, ମହାତ୍ମାଙ୍କର ମହତ୍‌ବାକ୍ୟ ପାଳନ କର, ଜାଗିଉଠ, ଲାଗିପଡ । ଦେଶ, ଜାତ, ଧର୍ମ ଓ ସମାଜର ମାନମହତ ବଜାୟ ରଖ; ନଚେତ୍ ହେଲା ବେଳେ ଭେଲା ବୁଡିବ ।

---

ସମାପ୍ତ

